# ଧ୍ରୁବ

# ୬

( ଏକାଙ୍କିକା )

ଲେଖକ

**ଶ୍ରୀ ସୁଧାକର ଦାସ, ଏମ୍.ଏ., ଡ଼ି.ଇଡ଼ି.**

ଶିକ୍ଷକ, ରେଭେନ୍ସା କଲେଜିଏଟ ସ୍କୁଲ, କଟକ

ପ୍ରକାଶକ

**ଡାଇମଣ୍ଡ ପବ୍ଲିଶର୍ସ**

ତେଲେଙ୍ଗାବଜାର

କଟକ-୯

ପ୍ରାପ୍ତିସ୍ଥାନ

**କଟକ ଟ୍ରେଡ଼ିଂ କମ୍ପାନୀ**

ବାଲୁବଜାର, କଟକ-୨

ମୂଲ୍ୟ—ଟ ୨.୦୦

# ଧ୍ରୁବ

## ପ୍ରଥମ ଦୃଶ୍ୟ

( ମହାରାଜ ଉତ୍ତାନପାଦଙ୍କ ବିଶ୍ରାମ କକ୍ଷ—ପ୍ରବେଶ କଲେ ସଭା ପଣ୍ଡିତ )

ପଣ୍ଡିତ—ମହାରାଜ ଉତ୍ତାନପାଦଙ୍କର ଜୟ ହେଉ !

ରାଜା—ଆସ ପଣ୍ଡିତେ ! ଆସନ ଗ୍ରହଣ କର ।

ପଣ୍ଡିତ—ଏ ଅଧମ ପ୍ରତି ମହାରାଜାଙ୍କର ଭାରି ଦୟା । ମୁଁ ତୁମ୍ଭଙ୍କ ଶିରରେ ଫୁଲଚନ୍ଦନ ଲଗାଇବାକୁ ଆସିଥିଲି ମହିମା !

ରାଜା—ଏ ଅବେଳରେ ପୁଣି କି ପୂଜା ପଣ୍ଡିତେ ?

ପଣ୍ଡିତ—ଆପଣଙ୍କୁ କ'ଣ ଅଜଣା ଅଛି ? ଆଜ୍ଞା ଆଜି ପରବ ପୂର୍ଣ୍ଣିମା—ବର୍ତ୍ତମାନ ରାଣୀମା'ଙ୍କର ପୂଜା କଢ଼ିଲ । ବଡ଼ ରାଣୀ ସୁନୀତି ଦେବୀ ଘର ଧର୍ମ କରୁଛନ୍ତି ଆଜ୍ଞା । ଦଅଁଙ୍କୁ ପ୍ରାର୍ଥନା ନ କଲେ ତାଙ୍କର ଖିଆପିଆ ବନ୍ଦ । ମନ ଯେନି ଫଳ ।

ରାଜା—ବେଶ୍, ତୁମର ତ ଭାରି ଆନନ୍ଦ । ପ୍ରତିଦିନ ଦକ୍ଷିଣା ପାଉଛ, ଭୋଜନ ପାଉଛ । ଆଉ ଚିନ୍ତା କ'ଣ ?

ପଣ୍ଡିତ—ଆପଣଙ୍କ ଦୟାରୁ ମୋର କଣ୍ଟ ଚିନ୍ତାନାହିଁ ମହାରାଜ ! ଈଶ୍ୱରଙ୍କ କୃପାରୁ ଆପଣଙ୍କର ପୁଣି କେଉଁ ଚିନ୍ତା ଅଛି ଯେ ? ରଜା ଆପଣ । ଆପଣଙ୍କ ସୁଖରେ ଆମେ ପ୍ରଜାମାନେ ସୁଖୀ । ବେଶ୍ ଆନନ୍ଦରେ ଅଛୁଁ ।

ରଜା—ତୁମେ କାହୁଁ ଜାଣିବ ପଣ୍ଡିତେ ମୋ ମନର ବେଦନା । ମୋ ମନ କଥା ମୋତେ ଏକା ଜଣା ସିନା !

ପଣ୍ଡିତେ—ହରି ଓଁ ହରି ଓଁ ! ଏ ଅଧମ ମହାରାଜାଙ୍କ ମନ କଥା କାହୁଁ ଜାଣିବ ଆଜ୍ଞା, କହିଲେ ସିନା ଜାଣନ୍ତି । ଏଥର କହନ୍ତୁ ମହାରାଜ ।

ରଜା—ବୁଝିଲ ପଣ୍ଡିତେ ! ସେହି ବଡ଼ ରାଣୀ ସୁମିତ୍ରଙ୍କ ପାଇଁ ମୋ ମନରେ ସନ୍ତାପ, ସରଗ ନାହିଁ ।

ପଣ୍ଡିତେ—କି କଥା ହେଲା ଏ ? ଯେଉଁ ରାଣୀମା ସମସ୍ତଙ୍କର ମଙ୍ଗଳ ମନାସୁଛନ୍ତି ତାଙ୍କପାଇଁ ପୁଣି ମହାରାଜାଙ୍କର ଦୁଃଖ !

ରଜା—ତୁମେ ମୋ ମନ କଥା ବୁଝିପାରୁନାହଁ ପଣ୍ଡିତେ । ତୁମେ କେଉଁ ଦିଗରୁ ଏକଥା କହୁଛ ମୁଁ ଶୁଣେ ।

ପଣ୍ଡିତ—ଆଜ୍ଞା, ଜଗତ ଗୋଟିଏ । ସେ ହେଲେ ଈଶ୍ୱର । କଥାରେ କହିଛି ପରା, 'ସକଳ ଘଟେ ନାରାୟଣ—ବସନ୍ତି ଅନାଦି କାରଣ ।' ଆମ ବଡ଼ ରାଣୀମା ସୁମିତ୍ର ଦେବୀ ସେହି ଈଶ୍ୱରଙ୍କୁ ପୂଜା କରୁଛନ୍ତି । ସ୍ୱାମୀ, ଦୁଇ ପୁଅ, ସାନରାଣୀ ସୁରୁଚି ଦେବୀ

ଆଜ ପ୍ରଜାମାନଙ୍କର ମଙ୍ଗଳକାମନା କରୁଛନ୍ତି । ଏହାଠାରୁ ବଳ ଆଉ କ'ଣ ଥାଇପାରେ ।

ରାଜା—କିନ୍ତୁ ସେ ରାଜାର ମନ ବୁଝୁନାହାନ୍ତି ପଣ୍ଡିତେ । ସେଥିପାଇଁ ମୋ ମନରେ ଭାବନାର ସୁଅ ।

ପଣ୍ଡିତ—ହେଇଥିବ, ହେଇଥିବ । ରାଜାଙ୍କ ମନ, ଏ କ'ଣ ଆମପରି ଗ୍ରେଣ୍ଡିଆ ମନ ହୋଇଛି ଯେ ବଅଁ ବୁଜାରେ ଖୁସି ହେବ ।

ରାଜା—ତୁମେ ମଧ୍ୟ ଜ୍ଞାନୀ ପଣ୍ଡିତ ହୋଇ ମୋ ମନକୁ ବୁଝି ପାରୁନାହଁ ଦେଖୁଛି ।

ପଣ୍ଡିତ—ଅଜ୍ଞା, ମୁଁ ଠିକ୍ ବୁଝିଛି । ମହାରାଜାଙ୍କ ମନ···ମାନେ ଏକ ବଡ଼ମନ । ସେ ପରି ମନ ଆମ କାହାରି ନାହିଁ । କଥାରେ କହନ୍ତି ପରା 'ରାଜାଙ୍କ ମନ ଖଜା ଖିଆକୁ' ।

ରାଜା—ଶୁଣ ପଣ୍ଡିତେ । ପରିହାସ କରନାହିଁ । କଥାଟା ବୁଝ । ମୁଁ ରାଜା, ମୋର କ'ଣ ଅଭାବ ଅଛି ? ଅମାପ ଧନ, ଦୁଇ ରାଣୀ, ଦୁଇ ରାଣୀଙ୍କର ଦୁଇ ପୁଅ । ପାତ୍ରମନ୍ତ୍ରୀ, ଘୋଡ଼ା ହାତୀ ।

ପଣ୍ଡିତ—ଏ କଥା ପୁଣି କହିବାକୁ ଅଛି ? ରାଜା ଦେବତା ପରି । ପ୍ରଜାମାନଙ୍କର ପ୍ରଭୁ । ଜାକ୍‌ଜମକ କେତେ କଣ ?

ରାଜା—ହେଉ, ମୋର ବଡ଼ ରାଣୀ ହୃଦୟ ହେଲେ ବୁଝିପାରୁ ନାହାନ୍ତି । ସବୁବେଳେ ଖାଲି ବଅଁ ପୂଜା—ସାଦା ସିଧା ବେଶପୋଷାକ । ଆଡ଼ମ୍ବର ନାହିଁ—ସଉକ ନାହିଁ । ସନ୍ନ୍ୟାସିନୀ

ପରି ବେଶଭୂଷା—ତାଙ୍କୁ ଦେଖିଲେ କଏ ବଡ଼ ରାଣୀ ବୋଲି କହିବ କି ପଣ୍ଡିତେ ?

ପଣ୍ଡିତ—ନିଶ୍ଚୟ, ନିଶ୍ଚୟ ରାଣୀ ବୋଲି କହିବେ ନାହିଁ କିନା—ମା' ବୋଲି କହୁଛନ୍ତି । ମା'ପରି ରାଣୀମା ଆମ ସମସ୍ତଙ୍କର ମଙ୍ଗଳ କାମନା କରନ୍ତି ।

ରାଜା—ତାଙ୍କ ପୁଅ ଧ୍ରୁବର ଆଚରଣ ମଧ୍ୟ ସେହିପରି । ପିଲାଦିନୁ ସାଦାସିଧା ସରଳ ଜୀବନ ଅଭ୍ୟାସ କଲାଣି । ସେ ପୁଣି ରାଜା ହୋଇ ରାଜ୍ୟ ଚଳାଇବ କିପରି ?

ପଣ୍ଡିତ—ତାହା ନୁହେଁ ଆଜି କ'ଣ ? କଥା ଯାଇ ସେଠି ରହିଛି । ମୁଁ ଏଣେ ଖୋଜି ହେଉଛି । ରାଜାଙ୍କର ଜାକ୍‌ଜମକରେ ଚଳିବା କଥା । ଅଜ୍ଞା, ଭେକ ଯେନ କିନା ଭିକ ।

ରାଜା—କିନ୍ତୁ ସାନରାଣୀ ସୁରୁଚି ଆଉ ତାଙ୍କ ପୁଅ ଉତ୍ତମ । ତାଙ୍କର ରାଜା ରାଜୁଡ଼ା ଢଙ୍ଗ ମୋତେ ବେଶ୍ ଆନନ୍ଦ ଦିଏ ପଣ୍ଡିତେ ।

ପଣ୍ଡିତ—ହଁ—ହଁ—ରାଣୀ ମା' ଭାରି ଚତୁରୀ । ତାଙ୍କ ପୁଅ ମଧ୍ୟ । ଦେଖୁନାହାନ୍ତି, ରାଣୀ ମା ପୁଣି ଆପଣଙ୍କୁ ସବୁ କାମରେ ପରାମର୍ଶ ଦେଉଛନ୍ତି । ଗୁଲିକ୍ ଚତୁର ବୋଲି କିନା ?

ଏଇତ ସାନରାଣୀ ମା ସୁରୁଚି ଦେବୀ ପୁଅ ଉତ୍ତମ ସହିତ ଏ ଆଡ଼କୁ ଆସୁଛନ୍ତି । ମୋତେ ବିଦାୟ ଦିଅନ୍ତୁ ମହାରାଜ, ତେଣେ ମନ୍ଦିର ଖୋଲାଅଛି । ମହାରାଜଙ୍କର ଜୟହେଉ !

## ୨ୟ୍ ଦୃଶ୍ୟ

( ପଣ୍ଡିତେ ଗ୍ଯଳଗଲା ପରେ ପ୍ରବେଶ କଲେ ରାଣୀ ସୁରୁଚି ଦେବୀ ଓ ପୁଅ ଉତ୍ତମ—ଉତ୍ତମ ବାପା ବାପା ଡାକ ରାଜାଙ୍କ ସିଂହାସନ ଉପରକୁ ଚଢ଼ିଗଲେ । )

ଉତ୍ତମ— ବାବା, ବାବା,

ରାଜା—ଆ ଉତ୍ତମ, ମୋ କୋଳକୁ ଆ ।

ସୁରୁଚି—ତୁମ ପାଖକୁ ଆସିବ ବୋଲି ଉତ୍ତମ ଏକାବେଳେକେ ବ୍ୟାକୁଳ ମହାରାଜ । ଦେଖନ୍ତୁ କପରି ହେଉଛୁ ।

ରାଜା—ତୁମେ ବୁଝି ପାରିବନି ରାଣୀ—ପିତାର ସ୍ନେହ ପୁଅ ପକ୍ଷରେ କେତେ ମୂଲ୍ୟବାନ ।

ଉତ୍ତମ—ବାବା, ବାବାମ, ଆସ, ବଗିଚ୍ଚକୁ ବୁଲିଯିବା । ସେଠି ପକ୍ଷୀ ଦେଖିବା । ଫୁଲ ତୋଳିବା ।

ରାଜା— ହଁ ଯିବା । ଆଜ ଟିକଏ ଖରା ମଉଳ ଯାଉ । ତୁ ଏଇଠି ମୋ କୋଳରେ ବସିଥା ।

ସୁରୁଚି—ଅଚ୍ଛା ସେ ପ୍ରଜାମାନଙ୍କ କଥା ବିଚ୍ଚାର କଲ ତ ?

ରାଜା—କେଉଁ ପ୍ରଜା ?

ସୁରୁଚି—କାଲି କହିଥିଲି ପରା । ସେମାନଙ୍କର ଏ ବର୍ଷ ଫସଲ ନଷ୍ଟ ହୋଇଯାଇଛି । ସେମାନେ ଘର ଦ୍ୱାରଗଣ ଦେଉଛନ୍ତି ।

ରଜା—ହଁ, ସେମାନଙ୍କ ପାଇଁ ବ୍ୟବସ୍ଥା ହୋଇଛି । ଆଜ କେଉଁ କଥା କହୁଛ ?

ସୁରୁଚି—ଅଚ୍ଛା, ଆମ ଉତ୍ତମର ପାଠପଢ଼ା ବ୍ୟବସ୍ଥା କରୁ ହେଲା କି ?

ଉତ୍ତମ—ନା ବାବା, ମୁଁ ପାଠ ପଢ଼ିବି ନାହିଁ । ଚାଲ ବଗିଚାକୁ ବୁଲିବାକୁ ଯିବା ।

ରାଜା—ପାଠ ପଢ଼ିବୁ ନାହିଁ ? ଛି—ଛି—ଏପରି କଥା କହନ୍ତି ? ପାଠ ପଢ଼ିଲେ ସମସ୍ତେ ସ୍ନେହ କରିବେ । ଭଲମଣିଷ ହେବୁ ।

ଉତ୍ତମ ବେଶ କମି ଗଲାଣି ଚାଲ, ଏଇଲେ ସଞ୍ଜ ଆସିଯିବ । ହେଇ, ଧ୍ରୁବ ଭାଇ ଆସିଲେଣି ? ତାଙ୍କୁ ସାଙ୍ଗରେ ନେଇଯିବା । ଆଗ ବୁଲିଆସିବା ଚାଲ ।

(ଧ୍ରୁବ ପ୍ରବେଶ କରି ବାବା ବାବା ଡାକି ରାଜାଙ୍କଠାକୁ ଧାଇଁ ଗଲା)

ଧ୍ରୁବ—ବାବା, ବାବାମ । ତୁମ କୋଳରେ ଉତ୍ତମ ବସିଛି, ମୁଁ ବସିବି ।

ସୁରୁଚି—ଶୁଣ ଧ୍ରୁବ । ତୁ ରାଜାଙ୍କ କୋଳରେ ବସି ପାରିବୁ ନାହିଁ । ଉତ୍ତମ ବସିଛି, ସେ ମୋ ପୁଅ । ତୁ ତ ମୋ ପୁଅ ନୋହୁଁ । ସେଇଠି ଠିଆ ହ ।

ଧ୍ରୁବ—ସାନ ମା' !

ସୁରୁଚି—ହଁ, ମୁଁ ଯାହା କହୁଚି, ସେଇଆ । ସେଇଠି ଠିଆହୋଇରହ ।

ରାଜା—ହଉ ହେଲା, ଆଜ ଉତ୍ତମ ବସିଚୁ, ତୁ କାଲି ବସିବୁ ।

ସୁରୁଚି—ନା—ନା—ସେ ଆଦୌ ବସି ପାରିବନାହିଁ ।

ଧ୍ରୁବ—ତାହାହେଲେ ମୁଁ ଯାଉଛି, ମା'ଙ୍କ ନିକଟକୁ ପଳାଇବି ।
(ଧ୍ରୁବ ଚାଲିଗଲା ।)

ସୁରୁଚି— ଯା ପଳାଅ ଏଠୁ ।

ଉତ୍ତମ— ଦେଖିଲ ବାବା—ଧ୍ରୁବଭାଇ ପଳାଇଗଲେ, ଆମ ସାଙ୍ଗରେ ବଗିଚାକୁ ଯାଇଥାନ୍ତେ ।

ରାଜା— ଦେଖ ସୁରୁଚି, ପିଲାଟା ମନରେ ଭାରି ଦୁଃଖ ହେଲା । ଦେଖୁନ କପରି ମୁହଁ ଶୁଖେଇ ଚାଲିଗଲା ।

ସୁରୁଚି— ପିଲାଟାର ପୁଣି ଦୁଃଖ କଣ ? କେଉଁଠି ଯାଇ ଖେଳିବ ତ କୁଆଡେ ଦୁଃଖ ଭୁଲିଯିବ । ଆସ, ବଗିଚାକୁ ବୁଲିଯିବା ପରା ।

ରାଜା— ହଁ, ଚାଲ । ଆ, ଉତ୍ତମ ।

ଉତ୍ତମ—ମୋତେ କାଖେଇ ଧର ବାବ ।

ରାଜା—ହଉ, ହେଲ ଆ, ମୋ କାଖକୁ ଆ । ଘର ଅଳଅଳ ହେଉଛୁ ।

ସୁରୁଚି—(ଯାଉଁ ଯାଉଁ) ହେବନ-ଚାର କ'ଣ ଉଣା ଅଛି ଯେ, ଗ୍ଲଲ, ଗ୍ଲଲ । (ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

(ସୁମାତି ବସି ବିଷ୍ଣୁ ପୂଜା କରୁଥିଲେ—ପ୍ରବେଶ କଲେ ଧ୍ରୁବ—ଦୂରରୁ କାନ୍ଦି କାନ୍ଦି କାନ୍ଦ ଦେଇ )

ସୁମାତି—ହେ ପ୍ରଭୁ ନାରାୟଣ, ତୁମ ପାଦତଳେ ମୁଁ ଶରଣ ଯାଉଛି ପ୍ରଭୋ । ମୋ' ପ୍ରଜାମାନଙ୍କର ମଙ୍ଗଳ ହେଉ । ମହାରାଜାଙ୍କର ମଙ୍ଗଳ ହେଉ । (କାନ୍ଦ ଦେଇ) ଏ କ'ଣ ? ଧ୍ରୁବ କାହିଁକି କାନ୍ଦ କାନ୍ଦ ଆସୁଛି !

ଧ୍ରୁବ—(କାନ୍ଦ କାନ୍ଦ) ମା'—ମା'—

ସୁମାତି—ଆ ବାପ, ଆ-କାନ୍ଦୁଛୁ କାହିଁକି ବାପ ?

ଧ୍ରୁବ—ମା' ! ମୋତେ ସାନ ମା' ଗାଳିଦେଲେ । ଉତ୍ତମ ବାବାଙ୍କ କୋଳରେ ବସିଥିଲା ମୁଁ ବସିବାକୁ ଗଲାରୁ ମୋ' ହାତ ଧରି

ବାହାର କରି ଦେଲେ । କହିଲେ, ତୁ ମୋ ପୁଅ ନୋହୁ ରାଜାଙ୍କ କୋଳରେ ବସିପାରିବୁ ନ ।

ସୁମାନ୍ତ—ହେଲା, ଏଇ କଥାରେ ଏତେ କାନ୍ଦ, ସାନ ମା'ଙ୍କ କଥାରେ କାନ୍ଦନ୍ତି ? ସେ ଗେଲରେ କହି ଦେଲେ ନା ।

ଧ୍ରୁବ—ନା' ମା, ରାଗରେ କହିଲେ । ମୋ ହାତଧରି ଟାଣି ନେଲେ । ମୋତେ ଭାରି ଦୁଃଖ ଲାଗିଲା ।

ସୁମାନ୍ତ—ହେଉ, ଏଇଠି ବସ । ଇଶ୍ୱରଙ୍କୁ ପୂଜାକର । ସେ ତୋ ଦୁଃଖ ଦୂର କରିବେ ।

ଧ୍ରୁବ—ମା' ଈଶ୍ୱର କ'ଣ ଦୁଃଖ ଦୂର କରନ୍ତି ?

ସୁମାନ୍ତ—ହଁ ବାପା ! ଈଶ୍ୱର ହେଉଛନ୍ତି ସବୁଠାରୁ ବଡ଼ । ସେ ସମସ୍ତଙ୍କ ଦୁଃଖ ଦୂର କରନ୍ତି । ସେ ମନ ଦେଇ ତାଙ୍କୁ ଡାକିପାରେ, ସେ ତାଙ୍କର କୃପା ଲାଭ କରେ । ଏଇଠି ମୂର୍ତ୍ତିଆ ମାରି ତୋ ମନକଥା ଜଣା । ସଞ୍ଜ ହୋଇ ଆସିଲାଣି । ମୁଁ ସନ୍ଧ୍ୟାଦୀପ ଆଣେ, ଆଳତି କରିବା । ତା'ପରେ ମନ୍ଦିରକୁ ଯିବା ।

(ସନ୍ଧ୍ୟା ବେଳେ-ଶଙ୍ଖରେ-ଆଳତି ଘଣ୍ଟା ଶବ୍ଦ)

ଧ୍ରୁବ—ଶୁଣିଲୁ ତ ମା' ଆମ ମନ୍ଦିରରେ ଶଙ୍ଖ, ଘଣ୍ଟା ବାଜୁଛି ।

ସୁମାନ୍ତ—ହଁ, ପଣ୍ଡିତେ ପୂଜା ଆରମ୍ଭ କଲେଣି । ଆସ ଯିବା । ସନ୍ଧ୍ୟା ଆଳତି ଦେଖିବା । ଈଶ୍ୱରଙ୍କୁ ଦୁଃଖ ଜଣାଇବା ।

ଧ୍ରୁବ—ମା', ଈଶ୍ୱର କେଉଁଠି ରହନ୍ତି ମା' ?

ସୁନୀତି—ସେ ସବୁଆଡେ ଅଛନ୍ତି । ବନ, ପାହାଡ଼, ଜଳ, ଘର, ମନ୍ଦିର ସବୁଠି । ଯେ ତାଙ୍କୁ ମନ ଠିକ୍ କରି ଡାକିପାରେ, ସେ ତାଙ୍କର ଆଶିର୍ବାଦ ପାଏ । ଆ, ମନ୍ଦିରକୁ ଯିବା ଆରତି ଦେଖିବା ।

(ପୁଣି ଶଙ୍ଖ ଓ ଘଣ୍ଟା ଶବ୍ଦ)

ଧ୍ରୁବ—ମା' ମୋତେ ମନ୍ଦିର ଖୁବ୍ ଭଲ ଲାଗୁଛି ମା' । ମୁଁ ଆଜି ଏଠି ରହିବି ଈଶ୍ୱରଙ୍କୁ ମନ କଥା ଜଣାଇବି ।

ସୁନୀତି—ନା-ନା-ରାତି ହେଲାଣି । ଚାଲ, ଘରକୁ ଚାଲ । ତୁ ଛୋଟ ପିଲା । ରାତିରେ ଭୟ କରିବୁ ।

ଧ୍ରୁବ—ଈଶ୍ୱର ଅଛନ୍ତି । ଭୟ କଣ ? ତୁମେ ପରା କହୁଛ, ଈଶ୍ୱର ସବୁ ଭୟ ଦୂର କରନ୍ତି ।

ସୁନୀତି—ହଁ, ତାହା ସତ ଯେ । ହେଲେ ରାତିରେ କାହିଁକି ? ଚାଲେ କାଲି ସକାଳେ ଆସି ପୁଣି ତାଙ୍କୁ ଦେଖାକରିବୁ । ଆ-ଯିବା-ଆ ।

ଧ୍ରୁବ—ନାଇ ମା-ମୋର ଈଶ୍ୱରଙ୍କୁ ଡାକିବାକୁ ଖୁବ୍ ମନହେଉଛି । ମୁଁ ଏଇଠି ମନ୍ଦିରରେ ବସି ଡାକିବି ।

ସୁନୀତି—ନାଇରେ ବାବା । ରାତିରେ ମନ୍ଦିର ବନ୍ଦରହେ । ତୁ ଘରେ ବସି ଡାକିବୁ ଚାଲ । ଈଶ୍ୱର ଘରେ ମଧ୍ୟ ଅଛନ୍ତି କାଲି ସକାଳେ ପୁଣି ମନ୍ଦିରକୁ ଆସିବୁ ଆ-ଯିବା-ଆ ।

ଧ୍ରୁବ—ମା' ଈଶ୍ୱରଙ୍କୁ କ'ଣ ବୋଲି ଡାକିବ ।

ସୁମତି— ଓଁ ନମୋ ନାରାୟଣାୟ, ନମୋ ବୈକୁଣ୍ଠାୟ ।

ଧ୍ରୁବ— ଓଁ ନମୋ ନାରାୟଣାୟ-ନମୋ ବୈକୁଣ୍ଠାୟ ।

( ମା'ଙ୍କ ସହିତ ଧ୍ରୁବ ଏହିପରି କହି କହି ନଅରକୁ ଫେରିଆସିଲି )

## ୪ର୍ଥ ଦୃଶ୍ୟ

(ରାତି ପାହି ଆସୁଛି—କୋଇଲି ଓ ଅନ୍ୟ ପକ୍ଷୀଙ୍କର ରବ । ସୁମତି ଉଠି ଦେଖନ୍ତି ତ ଧ୍ରୁବ ନାହିଁ)

ସୁମତି— ଧ୍ରୁବ, ଧ୍ରୁବରେ, ରାତି ପାହିଲାଣି, ଆ, ଉଠି ଆ । (ଟିକିଏ ପରେ) ଏଁ-ଏ କ'ଣ ? ଧ୍ରୁବ ନାହିଁ । ତା' ଯେ ଖାଲି ପଡ଼ିଛି ସେ ଗଲା କୁଆଡ଼େ ? ଯାଏଁ ଦେଖେ-ରାଜାଙ୍କ ପାଖକୁ ଗଲା କି ? (ଧ୍ରୁବ ଧ୍ରୁବ ଡାକି ଡାକି ରାଜପୁରରେ ଖୋଜିଲେ) ଧ୍ରୁବ-ଧ୍ରୁବ-ଧ୍ରୁବ ।

ରାଜା— କ'ଣ ହୋଇଛି ସୁମତି ? ଏପରି ଡାକୁଛ କାହିଁକି ? ଧ୍ରୁବର କ'ଣ ହୋଇଛି ?

ସୁମାତ—(କାନ୍ଦ କାନ୍ଦ ହୋଇ) ଧ୍ରୁବ ନାହିଁ । କେଉଁଆଡ଼େ ଚାଲିଯାଇଛି ।

ରାଜା—କ'ଣ ହେଲା, ଧ୍ରୁବ ଘରଛାଡ଼ି ଚାଲିଯାଇଛି । କଏ ଅଛରେ ? ପ୍ରହରୀ—କଏ କେଉଁଠି ଅଛ ?

ସୁରୁଚି—କାହିଁକି ବ୍ୟସ୍ତ ହେଉଛ ? ପିଲାଲୋକ ଯିବ କୁଆଡ଼େ କଟିଲାଅଡ଼େ ଯାଇଥିବ ।

ଉତ୍ତମ—ଧ୍ରୁବ ଭାଇ କୁଆଡେ ଗଲେ ବଡ ମା ?

ରାଜା—ତାକୁ ତୁମେ କିଛି କହି ନାହଁ ତ ସୁମାତ ?

ସୁମାତ—ନା-କାଲି ତୁମ ନିକଟରୁ ଫେରି କାନ୍ଦୁଥିଲା । ମୁଁ କହିଲି, ଈଶ୍ୱରଙ୍କୁ ଡାକ, ସେ ତୋ ଦୁଃଖ ବୁଝିବେ ।

ରାଜା—ଛୋଟ ପିଲାକୁ ଏ ସବୁକଥା କାହିଁକି କୁହ ସୁମାତ ? ମହା-ବଡ଼ମ୍ବନା—ମୁଁ କାଲି ଠିକ୍ କହୁଥିଲି, ସୁରୁଚି—ତୁମ କଥା ଧ୍ରୁବକୁ ବଡ଼ ବାଧିଛି ।

ସୁରୁଚି—ନାଇଁ ମ, କ'ଣ କହିଲି ଯେ, ସେଥିରେ ପିଲାଟା ଘରଛାଡ଼ି ଚାଲିଯିବ ।

ଉତ୍ତମ—ମୋ ଧ୍ରୁବ ଭାଇ କୁଆଡ଼େ ଗଲେ ମା' ! ମୋତେ କହ, ନହେଲେ ମୁଁ କାନ୍ଦିବି ।

ସୁରୁଚି—ରହ ଉତ୍ତମ, ଏପରି କାହିଁକି ହେଉଛୁ ? ଏଇ ତ ପଣ୍ଡିତେ ଆସୁଛନ୍ତି, ଚୁପ୍‌ରହ ।

ପଣ୍ଡିତ—( ପ୍ରବେଶ କରି ) ମହାରାଜାଙ୍କର ଜୟ ହେଉ । ଆଜ କଣ ମହାରାଜ ବଡ଼ ବ୍ୟସ୍ତ ଅଛନ୍ତି ।

ରାଜା—ଶୁଣ ପଣ୍ଡିତେ, ଧ୍ରୁବ କାଲି ରାତିରୁ ଘରଦ୍ୱାର କୁଆଡ଼େ ଚାଲି-ଯାଇଛି । ତୁମେ ତାର ସନ୍ଧାନ ଦେଇପାରିବ ତ ?

ପଣ୍ଡିତ—ଅଜ୍ଞା, ମୁଁ କାହୁଁ ଜାଣିବି ସେ କୁଆଡେ ଗଲେ । ରାଜ-ଉଆସ । ଏତେ ଜଗୁଆଳ ଥାଉଁ ଥାଉଁ ପିଲାଟା କୁଆଡ଼େ ଚାଲିଗଲା କିପରି ?

ରାଜା—ପ୍ରହରୀମାନଙ୍କୁ କଠୋର ଶାସ୍ତି ଦିଆଯିବ । ଆସ ପଣ୍ଡିତେ ? ମୁଁ ଏହାର ଉପଯୁକ୍ତ ବିଚାର କରିବି ।

ସୁନୀତି—ନାଁ ମହାରାଜ, ପ୍ରହରୀମାନଙ୍କୁ ଦଣ୍ଡ ଦିଅନ୍ତୁ ନାହିଁ । ମୋର ମନ କହୁଛି ହେ ଈଶ୍ୱର, ମୋ ପୁଅ ଯେଉଁଠି ଥାଉ, ଜୀବନରେ ବଞ୍ଚିଥାଉ । କୃପାକର ପ୍ରଭୁ ।

ରାଜା—ପଣ୍ଡିତେ, ଯାଅ, ପୁରସ୍କାର ଘୋଷଣା କର । ଯିଏ ଧ୍ରୁବକୁ ଖୋଜି ଆଣିଦେଇ ପାରିବ, ସେ ପୁରସ୍କାର ପାଇବ ।

ପଣ୍ଡିତ—ବ୍ୟସ୍ତ ହୁଅନ୍ତୁ ନାହିଁ, ମହାରାଜ । ମୁଁ ଦେଖିଛି, ପିଲାଟିର ଭାରି ଈଶ୍ୱର ଭକ୍ତି । କାଳେ ନୈରଆଡେ ଯାଇଥିବେ, ଦେଖିବା ଆସନ୍ତୁ ।

ସୁରୁଚି—ହଁ, ଚାଲ । ଏହା ଭିତରେ ଖୋଜିବା । ବ୍ୟସ୍ତହେଲେ କ'ଣ ହେବ ?

ରଜା—ଋଲ, ଚେତେବ ଋଲ ।

ସୁମାନ୍ତ—ହେ, ଈଶ୍ବର, । ମୋ ପୁଅକୁ ଜୀବନରେ ରଖି ଥାଅ ।
ଯେଉଁଠି ଥାଉ ପଛେ ସେ ବଞ୍ଚିରହୁ ପ୍ରଭୁ ।

## ୪ମ ଦୃଶ୍ୟ

( ପ୍ରବେଶ କଲେ ଦୁଇଜଣ ପ୍ରହରୀ ବଡ଼ ସନ୍ତର୍ପଣରେ )

୧ମ—କ'ଣ କରିବା ଭାଇ ? ଏଥର ପ୍ରାଣଦଣ୍ଡ ।

୨ୟ—କାହିଁକି ? କଣ ହେଲାକି ? ମୋତେ ଏପରି ଶୁଣାଅ କହୁଛୁ
କାହିଁକି ମୁଁ ବଡ଼ ସାହସୀ—କିନ୍ତୁ ବେହୋସ ହୋଇ ଗଲିଣି ।

୧ମ—କାଲି ରାତିରେ ଜଣଆସରେ ମୋର ପ୍ରହରୀ ଦେବା ପାଳିଥିଲା ।

୨ୟ—ହେଉ କ'ଣ ହେଲା ? ମୁଁ ତ ସିଂହଦ୍ୱାର ଜଗିଥିଲି ।

୧ମ—ଆରେଭାଇ, ମହାରାଜାଙ୍କ ପୁଅ ଧ୍ରୁବ କୁଆଡ଼େ କାଲି ରାତିରେ
ପଳାଇ ଯାଇଛନ୍ତି ।—

୨ୟ—ସତେ ! ଆରେ ଭାଇ ମଲେ ତ ? ମୋତେ ସେ କଥା
କହନ୍ତୁ । ମୋ କଲିଜା ପାଣି ହେଇଯାଉଚି । ବାବା ଏଥର
ମଲେ ।

୧ମ—ଆରେ, ଉପାୟ କ'ଣ କହୁନୁ ?

୨ୟ—ମୁଁ ଭାବୁଛି, କୁଆଡ଼େ ପଳେଇବା ଚାଲ । ଏ ରାଜ୍ୟ ଛାଡ଼ି ଏକଦମ ଚମ୍ପଟ୍ ମାରିବା, ବୁଝିଲୁ !

୧ମ—ମହାରାଜାଙ୍କ ଆଖିରେ ଧୂଳି ଦେଇପାରିବା ନାହିଁ । ଯଦି ଧରାପଡ଼ିବା ନା, ତାହାହେଲେ ଏକାବେଳକେ ଫାଶୀ । ଆମ ପିଲାଛୁଆ ମରିବେ ।

୨ୟ—ତୁ କଅଣ କହୁଛୁ କହିଲୁ ?

୧ମ—ମୁଁ ଶୁଣିଲି ରାଜା ଭାରି ଖପା । ସେ ଆମକୁ ଡାକିଥିଲେ; କିନ୍ତୁ ବଡ଼ ରାଣୀ ମା' ମନାକଲେ । କହିଲେ, ପ୍ରହରୀଙ୍କୁ ଦଣ୍ଡ ଦିଅନାହିଁ । ତାଙ୍କର କିଛି ଦୋଷ ନାହିଁ ।

୨—ଠିକ୍ କଥା ଏତେବେଳେ କହିଲୁ । ସେଇ ରାଣୀ ମା' ଆମଙ୍କୁ ରକ୍ଷାକରିବେ । ଚାଲ, ତାଙ୍କ ଗୋଡ଼ତଳେ ପଡ଼ିଯିବା ।

୧ମ—କ'ଣ ବର୍ତ୍ତମାନ ? ସେ ତ କାନ୍ଦୁଥିବେ !

୨ୟ—ବିଳମ୍ବ କଲେ ଯଦି ମହାରାଜା ଧରିନଅନ୍ତି ନା—ତାହେଲେ ମରିବା ଯେ ।

୧ମ—ଏଇତ ରାଣୀ ମା' ଆମଆଡ଼କୁ ଆସୁଛନ୍ତି । ବୋଧହୁଏ ପଚାରିବେ ।

୨ୟ—ସେ ପଚାରିବା ଆଗରୁ, ତାଙ୍କ ଗୋଡ଼ତଳେ ଶୋଇଯିବା—ଏଇ ଆସିଗଲେ । ତୁ କାନ୍ଦିବାକୁ ଆରମ୍ଭ କରିଦେ—ମୁଁ ବି କାନ୍ଦୁଛି ।

( ଦୁହେଁ ଛଳନା କରି କାନ୍ଦିଲେ—ପ୍ରବେଶ କଲେ ସୁମିତ୍ରା—ଆଖିରେ ଲୁହ—ସେ ପ୍ରବେଶ କରିବା ମାତ୍ରେ ଦୁହେଁ ତାଙ୍କ ଗୋଡ଼ତଳେ ପଡ଼ିଗଲେ । )

ସୁମାନ୍ତ—ଉଠ, ବାପ ! ଏପରି କାହିଁକି କାନ୍ଦୁଛ ?

୧ମ—ଆମ୍ଭଙ୍କୁ ରକ୍ଷାକର ରାଣୀମା'—ଆମ୍ଭେ ପ୍ରକୃତ ଦୋଷୀ ।

ସୁମାନ୍ତ—ଦୋଷ ତୁମର ନୁହେଁ, ମୋ ଭାଗ୍ୟର । ଉଠ, ବ୍ୟସ୍ତ ହୁଅ ନାହିଁ ।

୨ୟ—ନା-ମା', ଆମେ ଦୋଷୀ । କାଲି ରାତିରେ ପ୍ରହରୀ ଦେବା ପାଳି ଆମର ଥିଲା । ଧ୍ରୁବ କୁଆଡେ ଗଲେ ଆମେ ଜାଣିପାରିଲୁ ନାହିଁ । ମହାରାଜା ଘୋର ରାଗିଛନ୍ତି, ଶୁଣିଲୁ ।

୧ମ—ଆମଙ୍କୁ କୁଆଡ଼େ ଖୋଜୁଛନ୍ତି, ମା' !

ସୁମାନ୍ତ—ମୁଁ ତୁମକୁ ଧ୍ରୁବ କଥା ପଚାରି ବୁଝିବାକୁ ଆସିଥିଲି । ତୁମେ ତାହାହେଲେ ଜାଣିନାହଁ ପ୍ରହରୀ ?

୨ୟ—ନା ମା', ଆମେ ଜାଣିପାରିଲୁ । କର୍ତ୍ତବ୍ୟ ହୁଡ଼ିଛୁ, କ୍ଷମାକର ମା' ।

ସୁମାନ୍ତ—ଯେଉଁଠି ଈଶ୍ୱର ଅଛନ୍ତି, ଭୟ କ'ଣ ? ଯାଅ । ନିର୍ଭୟରେ କର୍ତ୍ତବ୍ୟ କର । ମୋ ପୁଅକୁ ସେହି ଈଶ୍ୱର ରକ୍ଷାକରିବେ ।

୧ମ—କାଳେ ମହାରାଜା ଦଣ୍ଡ ଦେବେ !

ସୁମାନ୍ତ—ନାଁ, ତୁମଙ୍କୁ ଦଣ୍ଡଦେବା ବୃଥା । ମୁଁ ମହାରାଜାଙ୍କୁ ଜଣାଇ ଦେଉଛି । ଯଦି ପାରିବ, ମୋ ପୁଅର ସନ୍ଧାନ ନିଅ । (ପ୍ରସ୍ଥାନ)

୨ୟ—ବଞ୍ଚିଗଲେ ଏଥର । ନୋହିଲେ ଦାନାପାଣି ସରିଥିଲା ।

୧ମ—ତୁ ଆସିଲୁ, ଧ୍ରୁବ କୁଆଡ଼େ ଗଲେ ଆମେ ଖୋଜିବା । ଉପକାରୀ ଲୋକର ଉପକାର ନ କଲେ ଈଶ୍ୱର ଅସନ୍ତୁଷ୍ଟ ହେବେ ଯେ । (ଦୁହେଁ ପ୍ରସ୍ଥାନ କଲେ)

## ଷଷ୍ଠ ଦୃଶ୍ୟ

( ବନ ପାହାଡ଼ ଘେରା ଗହନ ଅରଣ୍ୟ । ବାଘ ସିଂହଙ୍କ ଗର୍ଜନ ଶୁଭୁଥାଏ । ହରିନାମ ଗାଇ ଗାଇ ପ୍ରବେଶ କଲା ଧ୍ରୁବ )

( କୀର୍ତ୍ତନ ସ୍ୱର )

ଧ୍ରୁବ—( ଗୀତ ) କାହିଁ ଅଛ ହରି ଦେଖାଦେଇ ବାରେ

ଦୁଃଖ ମୋର ଦୂର କର

ଖୋଜି ଖୋଜି ମୁଁ ତ ଅଥୟ ହେଲିଣି

ମୋ ମନ ବେଦନା ହର ।

ଦେଖା ଦିଅ, ହେ ନାରାୟଣ

ନ ପାଇଲେ ଦେଖା ଖୋଜି ବୁଲୁଥିବି

ଗହନ କାନନ ବନ କନ୍ଦର ।

ଓଁ ନମୋ ନାରାୟଣାୟଃ-ଓଁ ନମୋ ବୈକୁଣ୍ଠାୟଃ ( ପ୍ରବେଶ କଲେ ନାରଦ ବୀଣା ବଜାଇ ବଜାଇ )

ନାରଦ—ବାଃ ଖାସ୍ ସୁନ୍ଦର ଗାଉଛୁରେ ପିଲା । ଆଉଥରେ ଗାଇଲୁ, ମୁଁ ବୀଣା ବଜାଏଁ ।

ଧ୍ରୁବ—ମୁଁ ହରିଙ୍କୁ ଖୋଜୁଛି । ତାଙ୍କୁ ମୋ ଗୀତ ଶୁଣାଇବି ।

ନାରଦ—ହଉ, ହେଲା । ଗାଅ ଗାଅ, ସେ ଶୁଣିବେ ଯେ—

ଧ୍ରୁବ—କାହାନ୍ତି ସେ ? କେଉଁଠି ଅଛନ୍ତି ?

ନାରଦ—ଏଇଠି ଅଛନ୍ତି । ତୋ ଗୀତ ଶୁଣୁଛନ୍ତି । ଗାଅ—

ଧ୍ରୁବ—ତୁମେ କ'ଣ ନାରାୟଣ ?

ନାରଦ—ନା'ରେ ବାବା, ମୁଁ ଗୋଟାଏ ବାବାଜୀ । ଏହି ବଣରେ ଥାଏଁ ତୋ ଗୀତ ଶୁଣି ଚାଲି ଆସିଲି ।

ଧ୍ରୁବ—ନାରାୟଣ ମୋ ଗୀତ ଶୁଣୁଛନ୍ତି ବୋଲି କହିଲ ଯେ ! କାହାନ୍ତି, ସେ କେଉଁଠି ?

ନାରଦ—ଗାଅ । ଆଉ ଥରେ ଗାଅ । ମୁଁ ବୀଣା ବଜାଏଁ ନାରାୟଣ ଆସି ପହଞ୍ଚି ଯିବେ ।

( ଧ୍ରୁବପୁଣି ସେହି ଗୀତ ଗାଇଲା । ନାରଦ ବୀଣା ବଜାଇଲେ । ଗୀତ ଶେଷ ହେଲା )

ଧ୍ରୁବ—କାହିଁ ? ନାରାୟଣ ତ ଆସିଲେ ନାହିଁ ।

ନାରଦ—ଆଚ୍ଛା, ମୁଁ ଯାଏଁ ନାରାୟଣଙ୍କୁ ଖବର ଦେବ । ତୋର ପରିଚୟ ଦେବୁ ତ ? ମୁଁ ନାରାୟଣଙ୍କୁ ଜଣାଇବ ।

ଧ୍ରୁବ—ମୋ ନାମ ଧ୍ରୁବ । ମୁଁ ମହାରାଜ ଉତ୍ତାନପାଦଙ୍କ ପୁତ୍ର ।

ନାରଦ—ଆରେ ବାଃ । ତୁ ତାହାହେଲେ ରାଜାଙ୍କର ପୁତ୍ର । ରାଜ ଉଆସ ଛାଡ଼ି ବନକୁ ଆସିଛୁ କାହିଁକି ?

ଧ୍ରୁବ—ମୁଁ ନାରାୟଣଙ୍କୁ ଖୋଜୁଛି ପରା ?

ନାରଦ—କାହିଁକି ? ତାଙ୍କଠାରେ ତୋର କି କାମ ?

ଧ୍ରୁବ—ସେ ମୋର ଦୁଃଖ ଦୂର କରିବେ ?

ନାରଦ—ତୋର ପୁଣି ଦୁଃଖ କ'ଣ ?

ଧ୍ରୁବ—ମା' କହିଛନ୍ତି ପରା ! ସେ ସମସ୍ତଙ୍କ ଦୁଃଖ ଦୂର କରନ୍ତି ।

ନାରଦ—ନାରାୟଣ ତୁମ ଘରେ ବି ଅଛନ୍ତି । ଚାଲ, ତୁମ ଘରକୁ ଯିବା । ବନରେ ଖାଲି ବାଘ ଭାଲୁ ଥାଆନ୍ତି ଶୁଣୁଛୁ ତ, କପରି ସିଂହ ଗର୍ଜନ କରୁଛି ?

ଧ୍ରୁବ—ନାରାୟଣ ବଣରେ ମଧ ଥାଆନ୍ତି । ମୁଁ ତାଙ୍କୁ ଆମ ନଅରରେ
ଡାକିଲି । ସେ ଆସିଲେ ନାହିଁ ।

ନାରଦ—ଏବେ ଆସିବେ ! ଚାଲ, ଘରକୁ ଫେରିଚାଲ ।

ଧ୍ରୁବ—ନା-ନା-ମୁଁ ତାଙ୍କ ଦେଖା ନ ପାଇଲେ ଏ ବନରୁ ଯିବି
ନାହିଁ ।

ନାରଦ—ଅଚ୍ଛା କଥା । ଏଥର ମୁଁ ଯାଉଛି, ନାରାୟଣଙ୍କୁ ତୋ
ଖବର ଜଣାଇ ଦେବି । ତୁ ଏଇଠି ବସି ଗୀତ ଗାଉ ଥା ।
ଦେଖିବା, ସେ ଆସୁଛନ୍ତି କି ନା ?

( ସ୍ୱର୍ଗରୁ )—ଧନ୍ୟ ବାଳକ ! ଧନ୍ୟ ତୋର ଭକ୍ତି ?
ବ୍ରହ୍ମା ଶିବ ମୁନି ଋଷିଗଣ ଯାହାର ଦର୍ଶନ ପାଇବାକୁ ସର୍ବଦା ଧ୍ୟାନ-
ରତ, ତୁ ତାଙ୍କୁ ଦେଖିବା ପାଇଁ ମନ ବଳାଇଛୁ । ତୋର ମନୋ-
ବାଞ୍ଛା ପୂର୍ଣ୍ଣ ହେଉ ବାଳକ । ନାରାୟଣ, ନାରାୟଣ-( ପ୍ରସ୍ଥାନ )

ଧ୍ରୁବ—ଓଁ ନମୋ ନାରାୟଣାୟ
ଓଁ ନମୋ ବୈକୁଣ୍ଠାୟ ।

## ସପ୍ତମ ଦୃଶ୍ୟ

( ବୈକୁଣ୍ଠ ପୁର—ନାରାୟଣଙ୍କ ନାମ ଉଚ୍ଚାରଣକରି ପ୍ରବେଶ
କଲେ ଦେବର୍ଷି ନାରଦ । )

ନାରଦ—ନାରାୟଣ, ନାରାୟଣ ।

ବିଷ୍ଣୁ—ଆସ ଦେବର୍ଷେ, ଆସନ ଗ୍ରହଣ କର ।

ନାରଦ—ଆଜ କାହିଁକି ବଡ଼ ଚିନ୍ତିତ ପ୍ରଭୋ ?

ବିଷ୍ଣୁ—ମୋର ଶଯ୍ୟା ଆଜ ନୂତନ ରୂପ ନେଇଛି, ଦେବର୍ଷି ।

ନାରଦ—ପ୍ରକାଶ କରନ୍ତୁ ପ୍ରଭୋ ! ଏ ଦାସ ଠାରେ କୁଣ୍ଠା କାହିଁକି ?

ନାରାୟଣ—ଜାଣିପାରୁ ନାହିଁ ଦେବର୍ଷି, ମୋର ଆସନ କାହିଁକି ଟଳମଳ ହେଉଛି । ମନ କାହିଁକି ଅସ୍ଥିର ହେଉଛି ।

ନାରଦ—ଆପଣଙ୍କୁ କ'ଣ ଜଣାନାହିଁ ଯେ ଏ ଦାସଠାରେ ଛଳନା କରୁଛନ୍ତି ପ୍ରଭୋ !

ବିଷ୍ଣୁ—କୁହ ଦେବର୍ଷି ! କେଉଁ ଭକ୍ତର ପ୍ରାର୍ଥନାରେ ମୁଁ ଏପରି ଅସ୍ଥିରତା ଅନୁଭବ କରୁଛି ?

ନାରଦ—ଆପଣ ଭକ୍ତବତ୍ସଳ ପ୍ରଭୋ । ମର୍ତ୍ତ୍ୟରେ ଏକ ସାମାନ୍ୟ ବାଳକର ତପସ୍ୟା ଆପଣଙ୍କୁ ବ୍ୟାକୁଳ କରୁଛି ।

ବିଷ୍ଣୁ—ସାମାନ୍ୟ ବାଳକ, କିଏ ସେ ବାଳକ ଦେବର୍ଷି !

ନାରଦ—ଉତ୍ତାନପାଦ ରାଜାଙ୍କରପୁତ୍ର ଧ୍ରୁବ, ବୟସ ମାତ୍ର ସାତବର୍ଷ ପ୍ରଭୋ । ନିର୍ଜନ ବନରେ ବସି ଆପଣଙ୍କୁ ପାଇବା ପାଇଁ ତପସ୍ୟା କରୁଛି । ଖିଆ ନାହିଁ, ପିଆନାହିଁ । କି କଠୋର ସାଧନା ?

ବିଷ୍ଣୁ—ଦେଖିଛ କି, ଦେଖିଛ କି, ଦେବର୍ଷି ସେ ବାଳକକୁ ?

ନାରଦ—ଦେଖିଛି ପ୍ରଭୋ, ବାଘ, ଭାଲୁ, ସିଂହମାନଙ୍କୁ ଦେଖି ଡର ଡର କରି କୁଣ୍ଢେଇ ପକାଉଛି । ଟିକିଏ ହେଲେ ଭୟକରୁନାହିଁ । ତାର ତପସ୍ୟା ଦେଖି ହିଂସ୍ରଜନ୍ତୁମାନେ ବି ଚମକି ଯାଉଛନ୍ତି । କି ସୁନ୍ଦରରୂପ !

ବିଷ୍ଣୁ—ଧନ୍ୟ ବାଳକ, ଧନ୍ୟ ସେ ଦେବର୍ଷି !

ନାରଦ—ତାର ନିଷ୍ଠା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା ଦେବ । ଆପଣ ଶୀଘ୍ର ତାକୁ ସାକ୍ଷାତ କରନ୍ତୁ । ନୋହିଲେ ତାର ତପସ୍ୟା ବଳରେ ଏ ବ୍ରହ୍ମାଣ୍ଡ କମ୍ପି ଉଠିବ ।

ବିଷ୍ଣୁ—ସାମାନ୍ୟ ବାଳକ କରେ କଠୋର ତପସ୍ୟା । ଟଳମଳ ବୈକୁଣ୍ଠଭୁବନ । ମୁଁ ନିଶ୍ଚୟ ଦେଖାଦେବି ତାକୁ ବୁଝିବି ତା ମନକଥା ଥରେ ।

ନାରଦ—ଖାଲି ବୈକୁଣ୍ଠଭୁବନ ନୁହେଁ, ପ୍ରଭୋ, ଏ ଚଉଦ ଭୁବନ ତାର ତପସ୍ୟାରେ ଟଳମଳ ହେବ । ସାଧୁ ବାଳକ ସେ । ଆପଣ ଶୀଘ୍ର ତାକୁ ଦେଖାଦିଅ, ତା ଇଚ୍ଛାପୂରଣ କରନ୍ତୁ ପ୍ରଭୋ ।

ବିଷ୍ଣୁ—ଆସ ଦେବର୍ଷେ ଏହିକ୍ଷଣି ଯିବି ମୁଁ ତା ପାଶ । ଛଦ୍ମବେଶେ ଦେଖାଦେଇ ବୁଝିବି ତା ମନ; କି ନିମନ୍ତେ କରୁଛି ତପସ୍ୟା । ଯାଉଛି ମୁଁ ଭକ୍ତ ।

ନାରଦ—ନାରାୟଣ, ନାରାୟଣ, ନାରାୟଣ— ।

## ୮ମ ଦୃଶ୍ୟ

( ନିର୍ଜନ ବନ ସ୍ଥଳ—ବାଘ, ସିଂହଙ୍କର ଗର୍ଜନ ଶୁଭୁଥାଏ, ନିର୍ଭୟରେ ଧ୍ରୁବ ବସି ହରି ହରି ଡାକୁଥାଏ । )

ଧ୍ରୁବ—ଓଁ ନମୋ ନାରାୟଣାୟଃ-ଓଁ ନମୋ ନାରାୟଣାୟ, ଓଁ ନମୋ ବୈକୁଣ୍ଠାୟ, ନମୋ ନମଃ । ଓଁ ହରି, ଓଁ ହରି, ଓଁ ହରି ।

(ଭାସି ଆସିଲା ବଂଶୀ ସ୍ୱନ—ତା'ପରେ ଉଭାହେଲେ ନାରାୟଣ)

ବିଷ୍ଣୁ—କଏ ତୁ ବାଳକ ? ତୋହର ନାମ କଅଣ ?

ଧ୍ରୁବ—ମହାରାଜା ଉତ୍ତାନପାଦଙ୍କର ମୁଁ ପୁଅ । ମୋ ନାମ ଧ୍ରୁବ । ମୁଁ ବିଷ୍ଣୁଙ୍କୁ ସାକ୍ଷାତ କରିବାପାଇଁ ତପସ୍ୟା କରୁଛି ।

ବିଷ୍ଣୁ—ବିଷ୍ଣୁ ସେ ତ ବୈକୁଣ୍ଠରେ ଥାଆନ୍ତି । ତାଙ୍କୁ ତୁ ଏଠି ପାଇବୁ କପରି ?

ଧ୍ରୁବ—ମୁଁ ଆପଣଙ୍କୁ ଚିହ୍ନି ପାରୁନାହିଁ । ଜାଣିଥିଲେ ଆପଣ ମୋତେ ବାଟ ଦେଖାଇ ଦିଅନ୍ତୁ ।

ବିଷ୍ଣୁ—ମୋ ଘର ଏହି ବଣ ଆଉ ପାଖରେ । ମଣିଷ ମୁଁ । ମୁଁ କାହୁଁ ଜାଣିବି ବୈକୁଣ୍ଠ କେଉଁଠି ? ଆଚ୍ଛା କହିଲୁ ଦେଖି, ତୋର ବିଷ୍ଣୁଙ୍କଠାରେ କାମ କ'ଣ ?

ଧ୍ରୁବ—ସେ ମୋ ଦୁଃଖ ଦୂର କରିବେ ।

ବିଷ୍ଣୁ—ଦୁଃଖ, ତୋର ପୁଣି ଦୁଃଖ କ'ଣ ବାଳକ ? ଖାଇପିଇ ତୋର ଖେଳିବା କଥା—କେଉଁ କଥାରେ ତୋର ଦୁଃଖ ବଢ଼ିଗଲା ?

ଧ୍ରୁବ—ମା' କହିଛନ୍ତି, ନାରାୟଣ ସର୍ବମୟ କର୍ତ୍ତା । ସେ ସମସ୍ତଙ୍କ ମନକଥା ଜାଣନ୍ତି । ସମସ୍ତଙ୍କ ଦୁଃଖ ଦୂର କରନ୍ତି । ମୋ ଦୁଃଖ କଥା ତାଙ୍କୁ ଜଣା । ସେ ସବୁ ଜାଣନ୍ତି । ମୁଁ ତାଙ୍କୁ ଭେଟିବି । ମୋତେ ଉପାୟ କହିଦିଅନ୍ତୁ । ଓଁ ନମୋ ନାରାୟଣାୟଃ, ଓଁ ନମୋ ବୈକୁଣ୍ଠାୟ, ଓଁ ହରି, ଓଁ ହରି ଓଁ ହରି ।

ବିଷ୍ଣୁ—( ଧ୍ରୁବଙ୍କୁ କୁଣ୍ଢେଇ ପକାଇ ) ଧନ୍ୟ ହେଲି ରେ ବାଳକ ତପସ୍ୟାରେ ତୋର । ମୁହିଁ ନିଜେ ନାରାୟଣ ଦେଖ ମୋର ରୂପ । ବୁଝୁଛି ମୁଁ ମନକଥା ତୋର ।

ଧ୍ରୁବ—ନାରାୟଣ, କ୍ଷମାକର ଅପରାଧ ମୋର । ଅଧମ ମୁଁ ନ ପାରିଲି ଚିହ୍ନି ।

ବିଷ୍ଣୁ—ସାମାନ୍ୟ ବାଳକ ହୋଇ ଅଚରିଛୁ କଠୋର ତପସ୍ୟା । ଯାହା କରି ନପାରନ୍ତି ମୁନିଋଷିମାନେ । ସନ୍ତୁଷ୍ଟ ମୁଁ ଫେରିଯାଅ ପିତାମାତା ପାଶେ ।

ଧ୍ରୁବ—ମୋର ଦୁଃଖ ଦୂର କରନ୍ତୁ ପ୍ରଭୋ !

ବିଷ୍ଣୁ—ଦେଉଅଛି ବର । ରଜା ହୋଇ ଆନନ୍ଦରେ ପାଳିବୁ ପ୍ରଜାଙ୍କୁ । ଶାନ୍ତିରେ ପ୍ରଜା ସକଳ ଗାଇବେ ତୋ ଯଶ । ମୃତ୍ୟୁପରେ ପାଇବୁ ତୁ ସ୍ଥାନ, ଧ୍ରୁବ ନକ୍ଷତ୍ରରେ । ଧ୍ରୁବ ନକ୍ଷତ୍ର ଯେପରି ସ୍ଥିର, ଆକାଶରେ ରହିଛି ଅଟଳ, ସେହିପରି ଯଶ ଖ୍ୟାତି ତୋର ସଂସାରରେ ହେବ ଚିରସ୍ଥାୟୀ । ଯାଉଛି ମୁଁ, ଯାଅ ପିତା ଗୃହେ ଏବେ ଆନନ୍ଦ ମନରେ ।

ଧ୍ରୁବ—(ପୁଣି ମଧୁର ବଂଶୀ ସ୍ୱରର ମୂର୍ଚ୍ଛନା ।) ଆହା, କାହିଁ ଗଲେ ପ୍ରଭୋ ଦେବ ନାରାୟଣ । ଓଁ ନମୋ ନାରାୟଣାୟଃ ଓଁ ନାରାୟଣ, ଓଁ ନାରାୟଣ । କ୍ରମେ ସମସ୍ତ ସ୍ୱର ମୂର୍ଚ୍ଛନା ଧୀରେଇ ଆସିଲା । )

— ପରଦା —

## ୯ମ ଦୃଶ୍ୟ

( ପ୍ରବେଶ କଲେ ରାଜା—ଦୁଃଖରେ ଭାଙ୍ଗି ପଡ଼ୁଛନ୍ତି । ତାଙ୍କ ପଛରେ ପଣ୍ଡିତ )

ପଣ୍ଡିତ—ଆଉ ଦୁଃଖ କରନ୍ତୁ ନାହିଁ ମହାରାଜ ! ଯାହା ଭାଗ୍ୟରେ ଥିଲା ଘଟିଲା । ଆପଣଙ୍କ ଦେହ ଭାଙ୍ଗି ପଡ଼ିଲାଣି ମହାରାଜ । ଆପଣଙ୍କ ମୁଖକୁ କୋଟି କୋଟି ପ୍ରଜା ଯେ ଚାହିଁ ରହିଛନ୍ତି !

ରାଜା—ମନ୍ଦଭାଗ୍ୟ ପଣ୍ଡିତେ, ମନ୍ଦ ଭାଗ୍ୟ । ମୋର ରାଜପଣକୁ ଧିକ୍—ସମସ୍ତ ରାଜକୀୟ ଶକ୍ତିର ଅଧିକାରୀ ହୋଇ ନିଜ ପୁଅର ସନ୍ଧାନ ପାଇ ପାରିଲିନାହିଁ । ଏହାଠାରୁ ଆଉ ଦୁଃଖର କଥା କ'ଣ ଥାଇପାରେ ?

ପଣ୍ଡିତେ—ତେବେ ଆପଣ କ'ଣ ଭାବୁଛନ୍ତି ମହାରାଜ ?

ରାଜା—ମୋ ଭାବନାର ସୀମା ନାହିଁ—ଅନ୍ତ ନାହିଁ—କେତେ ଘଟଣା ଆଖି ଆଗରେ ନାଚି ଯାଉଛି । ପୁଅ ମୋର ସତେ କ'ଣ ଜୀବନରେ ଅଛି ?

ପଣ୍ଡିତେ—ଯାହା କହନ୍ତୁ ପଛେ ମହାରାଜ, ସେ କଥା କହନ୍ତୁ ନାହିଁ । ସେ ବାଳକ ସାମାନ୍ୟ ନୁହେଁ । ମହା ତେଜସ୍ୱୀ । ତାକୁ କୌଣସି ଶକ୍ତି କ୍ଷତ କରିପାରିବ ନାହିଁ ।

ରାଜା—ସବୁ ବୁଝୁଛି ପଣ୍ଡିତେ । ହେଲେ ମନ ବୁଝୁନାହିଁ । ସବୁବେଳେ ଅଜଣା ଆଶଙ୍କାରେ ମନ ମୋର ଆଶଙ୍କିତ ।

ପଣ୍ଡିତେ—ଏତେ ଜାଗାକୁ ଦୂତ ପଠାଇଲେ, ପୁରସ୍କାର ଘୋଷଣା କଲେ—ଗୁପ୍ତଚର ନିଯୁକ୍ତ କଲେ । କାହିଁ ? କେଉଁଠି ହେଲେ

ପୁଅର ସନ୍ଧାନ ପାଇଲେ ନାହିଁ । ତେବେ କ'ଣ ଭାବୁଛନ୍ତି ଆଜ ମହାରାଜ !

ରାଜା—ମୁଁ ଭାବୁଛି ପାଟରାଣୀ ସୁମିତ୍ରଙ୍କ କଥା—ତାଙ୍କ ପକ୍ଷରେ ମୁଁ ଘୋର ଅନ୍ୟାୟ କରିଛି । ପୁତ୍ର ହରା ମାତାର ହୃଦୟ ବୁଝୁଛ ତ ପଣ୍ଡିତେ !

ପଣ୍ଡିତେ—ଏ କଥା ଆଜ କହିବାକୁ ଅଛି ମହାରାଜ ! ସୁମିତ୍ର ଦେବୀଙ୍କ ଧୈର୍ଯ୍ୟ ଦେଖି ମୋ ଆଖି ଖୋସିହୋଇ ଯାଉଛି । ସବୁବେଳେ ମନ୍ଦିରରେ ସେହି ଗୋଟିଏ ପ୍ରାର୍ଥନା, 'ମୋ ପୁଅକୁ ଭଲରେ ରଖ ପ୍ରଭୋ'

ରାଜା—ସେ ପ୍ରାର୍ଥନା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । କେବଳ ମନବୋଧ କରିବା ପାଇଁ ଏ ପ୍ରାର୍ଥନା—ହେଲେ ଅନ୍ତର ଯେ କପରି ଜ୍ୱାଳା କରୁଥିବ, ତାକୁ ମା' ନହେଲେ ବୁଝିବା କଷ୍ଟ ।

ପଣ୍ଡିତେ—ଶାନ୍ତ ହୁଅନ୍ତୁ ମହାରାଜ ! ଏପରି ଚିନ୍ତାକଲେ ମୁଁ ଦେଖୁଛି ଆପଣ ପାଗଳ ହୋଇଯିବେ ।

ରାଜା—ପାଗଳ ହୋଇଯିବା ବରଂ ଭଲ । ହେଲେ ପୁତ୍ର ବଧୂର ଜନନୀ ଆଗରେ ଅପରାଧୀ ଭଳି ଜୀବନ ବଞ୍ଚେଇବା ଦୁଃଖ ଦାୟକ ।

ପଣ୍ଡିତେ—ଆପଣଙ୍କ ଯୁକ୍ତି ଆଗରେ ମୋର ବୁଦ୍ଧି ବିଦ୍ୟା ସବୁ ହଜି ଗଲଣି । ମୁଁ ଉପାୟ ଚିନ୍ତାକରି ପାରୁନାହିଁ । ଆପଣଙ୍କର ଯେ କୋଟି କୋଟି ପ୍ରଜା ଅଛନ୍ତି ।

ରାଜା—ଯେଉଁ ପ୍ରଜାମାନେ ରଜାର ଦୁଃଖ ବୁଝିବାକୁ ଅକ୍ଷମ, ସେମାନଙ୍କ ପାଇଁ ମୋ ରାଜପଣ ମୂଲ୍ୟହୀନ । ସେମାନଙ୍କୁ ତ୍ୟାଗ କରିବା ବରଂ ଶ୍ରେୟସ୍କର ।

ପଣ୍ଡିତେ—ତାହା ହେଲେ ଆପଣ କ'ଣ ବସ୍ଥିରୁଛନ୍ତି ?

ରାଜା—ମୋତେ ମଧ୍ୟ ଧ୍ରୁବପରି ଏ ରାଜ୍ୟ ତ୍ୟାଗ କରିବାକୁ ହେବ ! ମୋର ନୟନ ପିତୁଳା ଯେଉଁଆଡ଼େ ଯାଇଛି, ମୁଁ ସେହି ପଥର ଯାତ୍ରୀ ହେବି । କାହାର ବାଧା ମାନିବି ନାହିଁ ।

ପଣ୍ଡିତେ—ସର୍ବନାଶ ହେଲା ପ୍ରଭୁ—ସର୍ବନାଶ ହେଲା—ଧୈର୍ଯ୍ୟ ଧରନ୍ତୁ ମହାରାଜ । ମୁଁ ଆଜଠାରୁ ମନ୍ଦିରରେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି ସେ ଆପଣଙ୍କ ମନୋବାଞ୍ଛା ପୂର୍ଣ୍ଣ କରିବେ ।
( ଏତିକିବେଳେ ଧାଇଁ ଧାଇଁ ପ୍ରବେଶ କଲା ଉତ୍ତମ )

ଉତ୍ତମ—ବାବା, ବାବାମ, ଧ୍ରୁବଭାଇ ଆସୁଛନ୍ତି । ତାଙ୍କ ପଛରେ କେତେ ଲୋକ । ଜୟଧ୍ୱନିରେ ବାଟ ଘାଟ କମ୍ପି ଉଠୁଛି । ଆମ ଉଆସ କୋଠା ଉପରକୁ ସବୁ ଦିଶୁଛି ।

ରାଜା—କ'ଣ କହୁଛୁ ଉତ୍ତମ, ଧ୍ରୁବ ଫେରି ଆସିଛି । ଆସ ପଣ୍ଡିତେ, ପୁଅକୁ ମୋର ଆଖିରେ ଦେଖିଲେ ଏ ମନ ବୁଝିବ ।

ଉତ୍ତମ—ସେ ଅସି ଆମ ବଗିଚା ଟପି ଗଲେଣି । ହେଇ ଶୁଣ—ଲୋକମାନଙ୍କର ଜୟଧ୍ୱନି କପରି ଶୁଭୁଛି ।

ପଣ୍ଡିତ—ହେଇ ତ ଧ୍ରୁବ ଆପଣଙ୍କ ଆଡ଼କୁ ଧାଇଁ ଆସୁଛନ୍ତି ।

( ନେପଥ୍ୟରୁ ଜୟଧ୍ୱନି—'ଜୟ ଯୁବରାଜ ଧ୍ରୁବଙ୍କର ଜୟ' )

ରାଜା—ମୋର ପୁତ୍ରରତ୍ନ ଫେରି ଆସିଛି ପଣ୍ଡିତେ । ଯାଅ ସୁନୀତିଙ୍କୁ ସମ୍ବାଦ ଦିଅ । ( ଉତ୍ତମର ମା'ଙ୍କୁ ସମ୍ବାଦ ଜଣାଇବା ନିମନ୍ତେ ପ୍ରସ୍ଥାନ )

( ରାଜା ଧ୍ରୁବକୁ କୁଣ୍ଢାଇ ପକାଇବାକୁ ଯିବାକୁ ଉଦ୍ୟତ—ଏତିକିବେଳେ ଧ୍ରୁବ ପ୍ରବେଶକରି ରାଜାଙ୍କ ପାଦତଳେ ପ୍ରଣାମ ଜଣାଇଲେ । )

ଧ୍ରୁବ—ମୋର ଅପରାଧ କ୍ଷମା କର ପିତା ।

ରାଜା—ଆ ବାବା, ମୋ କୋଳକୁ ଆ'—ତୋତେ ପାଇ ମୁଁ ଆଜି ନୂଆ ଜୀବନ ପାଇଲାପରି ଅନୁଭବ କରୁଛି । ତୋର କିଛି ଦୋଷନାହିଁ ବାବା ।

( ଧ୍ରୁବକୁ ଟେକି ଉଠାଇ କୁଣ୍ଢାଇ ଧରିଲେ )

ଏ କ'ଣ ? ଧ୍ରୁବର ଅଙ୍ଗସ୍ପର୍ଶକରି ମୁଁ ଏକ ଅଜ୍ଞାତ ଶକ୍ତି ଅନୁଭବ କରୁଛି ।

ଧ୍ରୁବ—ମୁଁ ନାରାୟଣଙ୍କୁ ଦେଖିଛି ବାବା—ସେ ମୋତେ ବର ଦେଇଛନ୍ତି ।

ରାଜା—ନାରାୟଣ ? ଯାହାର ଦର୍ଶନ ପାଇଁ ବ୍ରହ୍ମା ଶିବ ସର୍ବଦା ବ୍ୟାକୁଳ—ତୁ ତାଙ୍କୁ ଦେଖିଛୁ ବାପ । ଧନ୍ୟ ତୋର ସାଧନା—ଧନ୍ୟ କଲୁ ମୋତେ ।

( ପ୍ରବେଶ କଲେ ସୁନୀତି, ସୁରୁଚି ଓ ଉତ୍ତମ )

ସୁନୀତି—ବାପ ଧ୍ରୁବରେ ! ( ଆଖିରୁ ଆନନ୍ଦାଶ୍ରୁ ଗଡ଼ି ପଡ଼ୁଥିଲା )

ସୁରୁଚି—ଆ ବାପ, କୋଳକୁ ଆ । ( ଆଲିଙ୍ଗନ କରିବାକୁ ହାତ ବଢ଼ାଇଲେ )

ଉତ୍ତମ—ଭାଇ, ଭାଇ, ତୁ କୁଆଡ଼େ ଯାଇଥିଲୁ ଭାଇ ?

( ଧ୍ରୁବ ଓ ଉତ୍ତମ ପରସ୍ପରକୁ ଆଲିଙ୍ଗନ କଲେ )

ରାଜା—ଯାଅ ପଣ୍ଡିତେ । ପାତ୍ର ମନ୍ତ୍ରୀମାନଙ୍କୁ ସମ୍ବାଦ ଦିଅ । ଉତ୍ସବର ଆୟୋଜନ କରନ୍ତୁ ।

ଧ୍ରୁବ—ମା' ମା, ( ସୁରୁଚି ଓ ସୁମାତଙ୍କ ଅଙ୍କକୁ ଧାଇଁ ଯିବା ବେଳେ ଉଭୟ ତାକୁ କୁଣ୍ଢାଇ ଧରଲେ—ନୟନରୁ ଆନନ୍ଦାଶ୍ରୁ ଝରୁଥିଲ )

ମା' ମୁଁ ନାରାୟଣଙ୍କୁ ଦେଖିଲ ମା—ସେ ମୋତେ ଅଶୀର୍ବାଦ କଲେ ।

ସୁମାତ—ସେ ତୋତେ ଯଶସ୍ୱୀ କରନ୍ତୁ ବାପ, ତାଙ୍କଠାରେ ମୋର ଏତିକ ପ୍ରାର୍ଥନା—

ପଣ୍ଡିତେ—ଆଜ ମୋର ଆନନ୍ଦର ସୀମା ନାହିଁ । ଯାଏଁ, ତେଣେ ମନ୍ଦିରରେ ପୂଜା ଆରମ୍ଭ କରନ୍ଦଏଁ । ଉତ୍ସବ ହେବ । ଭୋଜି, ଗୀତ, କେତେ କ'ଣ । ହେ ପ୍ରଭୋ ନାରାୟଣ, ତୁମର ଇଚ୍ଛାପୂର୍ଣ୍ଣ ହେଉ ପ୍ରଭୋ । ( ଆନନ୍ଦରେ ପଣ୍ଡିତଙ୍କର ପ୍ରସ୍ଥାନ )

ରାଜା—ଆ ବାବା-ମୋର ଶୂନ୍ୟ ନଗର ତୋ ବିନା ହାହାକାର କରୁଥିଲ—ତୋର ପାଦ ପଡ଼ି ଏ ନଗର ପୂର୍ଣ୍ଣ ହୁଉଛି । ଆସ ସୁମାତ, ଆସ ସୁରୁଚି, ଆ' ଉତ୍ତମ—ଆଜ ଆମର ଆନନ୍ଦର ଦିନ—ମୋର ନୟନ ପିତୁଳା ଧ୍ରୁବ ଫେର ଆସିଛି ମୋର ଶୂନ୍ୟ କୋଳକୁ । ନେପଥ୍ୟରୁ ଜୟଧ୍ୱନ ଶୁଭୁଥାଏ ) ଧନ୍ୟ ଧନ୍ୟ ପ୍ରଜାଗଣେ—ତୁମର ପ୍ରିୟ ଯୁବରାଜ ଆଜ ତୁମ ଗହଣରେ—କର ଜୟଧ୍ୱନ—ତୁମର ଜୟଧ୍ୱନରେ ଏରାଜ୍ୟ ମୁଖରିତ ହୋଇଉଠୁ । ନାରାୟଣ ତୁମର ମଙ୍ଗଳ ବିଧାନ କରନ୍ତୁ ।

( ସମସ୍ତଙ୍କର ପ୍ରସ୍ଥାନ )